# ଚତୁଷ୍ପଦୀ
## ଓ
# ଅନ୍ୟାନ୍ୟ କବିତା

ତାରଣୀ ଚରଣ ଦାସ
"ସଦାନନ୍ଦ"



ମହାନଦୀ ବୁକସ୍
ଭୁବନେଶ୍ୱର ॥ ୧୯୯୪

ଉତ୍ସର୍ଗ :

ସ୍ୱର୍ଗବାସିନୀ 'କାଞ୍ଚନ'ର ସ୍ମୃତି ଉଦ୍ଦେଶ୍ୟରେ........

— ସ୍ୱଉନା ||

ପ୍ରଥମ ପ୍ରକାଶ : ୧୯୯୪ || ପ୍ରକାଶକ : ସୁରେନ୍ଦ୍ର ନାଥ ଜଗଦେବ, ମହାନଦୀ ବୁକ୍‌ସ୍, ଏମ୍. ଏ. ୫୨ ସାମନା, ଶହୀଦଗୋପୀନାଥ ପ୍ରସାଦ ନନ୍ଦ କଲୋନୀ, ରସୁଲଗଡ଼, ଭୁବନେଶ୍ୱର-୭୫୧୦୧୦ || ମୁଦ୍ରଣ : ଅଦ୍ୱୈତ ପ୍ରିଣ୍ଟର୍ସ, ଅଲିଶା ବଜାର, କଟକ-୨ ||

"CHATUSPADI O' ANYANYA KABITA": A Volume of Poems by Tarini Charan Das "Chidanand". First Published : 1994. Published by S. N. Jagadeb, Mahanadi Books, M. A. 52 Front, Bhubaneswar-751010. Printed at Adwit Printers, Alisha Bazar Gaudsahi, Cuttack-753002

ମୂଲ୍ୟ :

ବୋର୍ଡ଼ ବନ୍ଧେଇ : ତିରିଶ ଟଙ୍କା || Hard Cover : Rs. 30.00

ସାଦା ବନ୍ଧେଇ : କୋଡ଼ିଏ ଟଙ୍କା || Soft Cover : Rs. 20.00

# ସୂଚୀ

## କବିକଥନ

କବିତା ଗୋଟିଏ ଶବ୍ଦ-ଶିଳ୍ପ । ଏହା ଆଜି ଗଦ୍ୟ-ପଦ୍ୟର ପାର୍ଥକ୍ୟ ରକ୍ଷି ନଥାଏ, ରକ୍ଷିଥାଏ କଥନ ଭଙ୍ଗୀର । ଅନ୍ୟାନ୍ୟ ସାହିତ୍ୟ ବିଭାଗ ପରି ଏହା ସାହିତ୍ୟର ଗୋଟିଏ ଭାଷା ଏବଂ କବିର ସ୍ୱତନ୍ତ୍ର ଭାଷା । ଯେ ପର୍ଯ୍ୟନ୍ତ କବି ଏହି ଭାଷାଟି ପାଏ ନାହିଁ, ସେ କବିତା ଲେଖିପାରେ ନାହିଁ ଯଦି ଲେଖେ, ତା'ହେଲେ ଅନ୍ୟର ଭାଷାରେ ଲେଖେ । ତେବେ ସେ ନିଜ ଭାଷା ପାଇଲାବେଳକୁ ତାହା ଅନେକଙ୍କ ଭାଷା ବା ଶୈଳୀର ସମନ୍ୱୟ ଉପରେ ଆଧାରିତ ହୋଇ ସାରିଥାଏ । ମୋର "ଭାବନା"ର ଭାଷାଠାରୁ "କବିତା-୧୯୯୧"ର ଭାଷା ଭିନ୍ନ ଏବଂ "ଚରୁଷ୍ପଦୀ"ର ଭାଷା ଉକ୍ତ ଉଭୟ ସଂକଳନର ଭାଷା ଠାରୁ ଭିନ୍ନ । ଏଣୁ ଏହାକୁ ଭାଷା ନିଜସ୍ୱ ଶୈଳୀ ମଧ୍ୟ କହିହେବ ।

'ଚରୁଷ୍ପଦୀ' ଗୋଟିଏ 'ମହାକବିତା' ।* ଏହାର ସ୍ୱରୋଟି କବିତା ପରସ୍ପର ଠାରୁ ଭିନ୍ନ ହେଲେ—ସାମଗ୍ରିକ ଭାବେ ଏକ ବା ଅଖଣ୍ଡ । ଅସତ୍ୟ ଉପରେ ସତ୍ୟର, ବନ୍ଧ୍ୟତା ଉପରେ ଉର୍ବରତାର, ମୃତ୍ୟୁ ଉପରେ ଜୀବନର ଏବଂ ଅନାସ୍ଥା ଉପରେ ଆସ୍ଥାରେ ଚିରନ୍ତନ ବିଜୟ, ଏହି କବିତାଟିର ମୁଖ୍ୟ ପ୍ରତିପାଦ୍ୟ ହୋଇପାରେ । ଏଥିରେ କବି ଯେଉଁ ଦାନଶୀଳତା, ମାନବିକତା ଏବଂ ମୈତ୍ରୀ ବା ସହାବସ୍ଥାନର ସନ୍ଦେଶ ପାଇଛି, ତାହା ପାଶ୍ଚାତ୍ୟ ନୁହେଁ, ପ୍ରାଚ୍ୟ । ବେଦ, ବାଲ୍ମୀକି, ବ୍ୟାସ, କାଳିଦାସ ଓ ରବୀନ୍ଦ୍ରନାଥ ଏହାର ମୂଳ ଉତ୍ସ । ଏହାର ଶୈଳୀ ପାଶ୍ଚାତ୍ୟ ବୋଧ ହେଲେହେଁ ପ୍ରାଣ ପୂର୍ଣ୍ଣତଃ ପ୍ରାଚ୍ୟ ବା ପୌର୍ବାତ୍ୟ । ଅନୁଧ୍ୟାନ କଲେ ଜଣାଯିବ ଯେ 'ଚରୁଷ୍ପଦୀ' T. S. Eliotଙ୍କର 'The Waste Land'ର ପ୍ରତିପକ୍ଷୀ କବିତା, ଯେଉଁଥିରେ କି ଦାନ ଓ ଦୟାର ଅସାଫଲ୍ୟ ପ୍ରତି ବ୍ୟଙ୍ଗ ଏବଂ ଆଜିର ପରିପ୍ରେକ୍ଷୀରେ ଦମନ ଓ ଦଣ୍ଡବିଧାନ ପ୍ରତି ସମର୍ଥନ-ଜ୍ଞାପନ କରାଯାଇଛି । ଫଳତଃ ଏହି କବିତାଟିରେ ପୁରାବୃତ୍ତ (ମିଥ୍) ଆଦ୍ୟବିମ୍ବ (ଆର୍କିଟାଇପ୍), ବିମ୍ବ (ଇମେଜ୍) ବା ରୂପକଳ୍ପ, ପ୍ରତୀକ ଏବଂ ଦେଶ ବିଦେଶର ଲୋକଗଳ୍ପ ସ୍ଥାନ ପାଇଛି । ଏହା ବ୍ୟତୀତ ଉର୍ବରତାବୋଧକ ମିଥ୍ (Ferdility myth), ଉଦ୍ଭିଦପରକ ମିଥ (Vegetation myth', ବୀରତ୍ରାଣ ମିଥ୍ (Hero saviour myth), ଦଣ୍ଡପରକ ମିଥ୍ (Punishment myth), ପିତୃ ଅନ୍ୱେଷଣ ବୃତ୍ତି, ପିତା ବିରୋଧୀ ପ୍ରବୃତ୍ତି, ଆଦି ଜନନୀ (Magramaters)

---

* "କବିତା-୧୯୯୧", ଇତିବୃତ୍ତର ଭୂମିକା ଦ୍ରଷ୍ଟବ୍ୟ ।

ପ୍ରଭୃତିର ଆଭାସ ମିଳି ପାରିବ । ଋଷ୍ୟଶୃଙ୍ଗ, କୃଷ୍ଣ, ପରୀକ୍ଷିତ, ଧ୍ରୁବ, ପ୍ରହ୍ଲାଦ, ରୋହିତାଶ୍ୱ (ରୋହିତାକ୍ଷ) ଓ ନଚିକେତା ପ୍ରଭୃତି ଏହାର ଉଦାହରଣ । କବିତାରେ ଥିବା ଇଲା (ନାରୀ ଓ ପୁରୁଷାନୁଭୂତିର ବଳିଷ୍ଠ ପ୍ରତୀକ), ଆରଫ୍ୟୁସ୍, ପ୍ରମେଥିଅସ୍, ମେଷପାଳକ, ସ୍ୱର୍ଣ୍ଣହଂସ ପ୍ରଭୃତି ପ୍ରାଚ୍ୟ ଓ ପାଶ୍ଚାତ୍ୟ କଥାବୃତ୍ତି (ମୋଟିଫ୍) ଏବଂ ଆଦ୍ୟବିମ୍ବ ଅଟନ୍ତି । ତେବେ କାବ୍ୟର ପ୍ରାରମ୍ଭରେ ଦେଖା ଦେଇଥିବା ସହପାଠିକା ଇଲା ଏବଂ କାବ୍ୟାନ୍ତ ଇଲା ଏକ ନୁହନ୍ତି । ସଂକ୍ଷେପରେ କହିବାକୁ ଗଲେ, ପ୍ରାଚୀନ ଭାରତର ସାଂସ୍କୃତିକ ନଗରୀ କାଶୀରୁ ଏକ ମାନସିକ ଯାତ୍ରାର ଅବତାରଣା କରାଯାଇଛି 'ଚତୁଷ୍ପଦୀ' କବିତାରେ । ସୂଚନାଯୋଗ୍ୟ ଯେ ଏହି ଲେଖକ କାଶୀରେ ନିଜର ଉଚ୍ଚଶିକ୍ଷା ସମାପ୍ତ କରିଥିଲେ । ଅନ୍ୟ କବିତା ଗୁଡ଼ିକ ମିଥ୍ ଓ ଯୁଗବୋଧ ଉପରେ ଆଧାରିତ ।

ଏହି ଦୀର୍ଘ କବିତା ଏବଂ ଅନ୍ୟାନ୍ୟ କବିତା ଗୁଡ଼ିକରୁ ପାଠକଗଣ ଯତ୍‌କିଞ୍ଚିତ୍ ରସାସ୍ୱାଦନ କରିପାରିଲେ ମୁଁ ନିଜକୁ ଧନ୍ୟ ମନେକରିବି ।

କବିତା ଗୁଡ଼ିକୁ ପଢ଼ି ବିଦ୍ୱତ୍ତାପୂର୍ଣ୍ଣ ଭୂମିକାଟିଏ ଲେଖିଥିବା ଯୋଗୁଁ ମୋର ଶୁଭଚିନ୍ତକ ଓ ପ୍ରୋତ୍ସାହକ ପ୍ରଫେସର ଶ୍ରୀଯୁକ୍ତ ବିଧୁଭୂଷଣ ଦାସଙ୍କ ଠାରେ ମୁଁ ଚିରକୃତଜ୍ଞ ରହୁଛି । ଏବଂ 'ମୂଲ୍ୟାୟନ'ର ସଂପାଦକ ଓ ମହାନଦୀ ବୁକ୍‌ସର ଅବୈତନିକ ନିର୍ଦ୍ଦେଶକ ବନ୍ଧୁ ପ୍ରଫୁଲ୍ଲ କୁମାର ଜଗଦ୍ଦେବଙ୍କ ସହଯୋଗ ପାଇଁ କୃତଜ୍ଞତା ଜ୍ଞାପନ କରୁଛି ।

ପ୍ଲଟ୍ ନଂ ୭୦୩, ଶହୀଦ ନଗର
ଭୁବନେଶ୍ୱର
ତା ୧୮-୧୦-୯୩

ତାରିଣୀ ଚରଣ ଦାସ
"ଚିଦାନନ୍ଦ"

# ଭୂମିକା

ଅନେକ ଦିନ ପୂର୍ବେ ମ୍ୟାକଲେ କହିଥିଲେ ଯେ ସଭ୍ୟତା ଯେତିକି ଅଗ୍ରସର ହେବ କବିତା ସେତିକି ହ୍ରାସ ପାଇବ । ମ୍ୟାକଲେ ଆଧୁନିକ ଭୌତିକ ସଭ୍ୟତା ସହିତ କବିତା ପରି ଏକ ସୂକ୍ଷ୍ମ, ସୃଜନାତ୍ମକ ପ୍ରୟାସର ବିରୋଧକୁ ଯାହା ଉପଲବ୍‌ଧି କରିଥିଲେ, ପ୍ରାୟ ଦେଢ଼ଶହ ବର୍ଷ ପୂର୍ବେ, ତାହା ଅପେକ୍ଷା ସଭ୍ୟତାର ଅଗ୍ରଗତି ଅନେକ ବେଶି ପରିମାଣରେ ହୋଇଛି । ସେଥିପାଇଁ କବିତାର ଉତ୍ସ ଶୁଷ୍କ ହୋଇଯାଇଛି ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । କବିତାର ସୃଷ୍ଟି ଏବଂ ଉପଭୋଗ ପାଇଁ ଯେଉଁ ମାନସିକତା ଆବଶ୍ୟକ ତାହା ଏହି ଆଧୁନିକୋତ୍ତର ସଭ୍ୟତାରେ ବିରଳ । ଏହି ସଭ୍ୟତା ସୃଷ୍ଟି କରିଛି ଜଣେ ମନୁଷ୍ୟ, ଟେକ୍ନୋଟ୍ରନିକ ମନୁଷ୍ୟ, ଯାହା ପାଖରେ ଇତିହାସର ଧାରା ଭଗ୍ନ । ତେଣୁ ସେ ଆତ୍ମକୈନ୍ଦ୍ରିକ ଏବଂ ଯେତେବେଳେ ସେହି ପ୍ରୟାସରେ ସେ ଲିପ୍ତ ସେତେବେଳେ ତାହା ଅନ୍ତରରେ କେବଳ ଶୂନ୍ୟତାର ଯନ୍ତ୍ରଣା । ଏହି ଯାନ୍ତ୍ରିକ ସଭ୍ୟତାର ପ୍ରଭାବ ଯୋଗୁ ସାଧାରଣ ପାଠକ ଆଜି ଛିନ୍ନମୂଳ, ଦିଗଭ୍ରଷ୍ଟ; ଇତିହାସର ଯେପରି ମୂଲ୍ୟ ତାହା ପାଖରେ ନାହିଁ । ସେହିପରି ମନୁଷ୍ୟ ସଂସ୍କୃତିର ଅବିଚ୍ଛିନ୍ନତାର ବୋଧ ମଧ୍ୟ ତାହା ପାଖରେ ନାହିଁ । ଯେଉଁ ମିଥ୍ ତାହାର ବିଶ୍ୱାସର ଆଧାର ହୋଇ ତାକୁ ଆଶ୍ୱାସନା ଦେଉଥିଲା, ସେହି ମିଥ୍ ଆଜି ବିଶ୍ୱାସଯୋଗ୍ୟ ନୁହେଁ । ସେହିକଥା କହିଛନ୍ତି Lyoford, ଆଜି "ମହାନ ଆଖ୍ୟାନ"ର ଅବସାନ ଘଟିଛି ଏବଂ ଟେକ୍ନୋଟ୍ରନିକ ମନୁଷ୍ୟ ପାଇଁ କେବଳ ଉତ୍ତେଜନା ହିଁ ସର୍ବସ୍ୱ । ସେଥିପାଇଁ ଦୀର୍ଘ କବିତା ଆଜିକାଲି ବିରଳ ।

ଆଧୁନିକ ସାହିତ୍ୟର ଏହି ସମସ୍ତ ସମସ୍ୟା, ବିଶେଷତଃ, କବିର ପାଠକକୁ ତାହାର ଭାବ ଓ ଅଭିଜ୍ଞତାର ପ୍ରସାରଣ ବା 'Communication' ପ୍ରଫେସର ଚିଦାନନ୍ଦଙ୍କୁ ଭଲ ଭାବରେ ଜଣା । ଦୀର୍ଘକାଳର ସାହିତ୍ୟର ଅଧ୍ୟୟନ ଓ ଅଧ୍ୟାପନାର ଅଭିଜ୍ଞତା ତାଙ୍କର କବିତାର ପୃଷ୍ଠଭୂମିରେ ରହିଛି ଏବଂ ତାହା ତାଙ୍କର "କବି କଥନରୁ" ସୁସ୍ପଷ୍ଟ । କବିତା ନିର୍ଦ୍ଦିଷ୍ଟ ରୂପରେ ଶବ୍ଦ-ଶିଳ୍ପ— ଏହି ଶବ୍ଦ ସହିତ କବିକୁ ଅହରହ ସଂଗ୍ରାମ କରିବାକୁ ପଡ଼େ, ବିଶେଷତଃ ଆଧୁନିକ ଯୁଗରେ ଯେତେବେଳେ ଭାଷା ଉପରେ ନାନା ପ୍ରକାରର ବାହ୍ୟ ଚାପ ପଡ଼ି ତାକୁ ଦୁର୍ବଳ କରୁଛି । କବିର ଏହି ସଂଗ୍ରାମ ଆହୁରି ତାତ୍ପର୍ଯ୍ୟପୂର୍ଣ୍ଣ ଏବଂ କଷ୍ଟସାଧ୍ୟ ହୋଇଛି ।

ଚିଦାନନ୍ଦଙ୍କର ଟି. ଏସ୍. ଏଲିଅଟଙ୍କର 'Four Quartets' ଏବଂ 'The Waste Land' ପରି କବିତା ସହିତ ପରିଚୟ ତାଙ୍କର 'କବି କଥନ'ରୁ

ଜଣାପଡ଼େ । ବିଭିନ୍ନ ପ୍ରକାରର ନୃତାତ୍ତ୍ୱିକ ମିଥ୍‌ର ମୂଳରେ ରହିଛି ମାନବ ସଂସ୍କୃତିର ଇତିହାସ, ଏବଂ ଯେତେବେଳେ ଇତିହାସର ସ୍ୱରୂପ ବା ସଂଜ୍ଞାରେ ପରିବର୍ତ୍ତନ ଘଟିଛି, ସେଠି ମିଥ୍‌ର ପ୍ରୟୋଗ ଦ୍ୱାରା କବିତାକୁ ପୁନର୍ବାର ଇତିହାସ ସହିତ ସଂଲଗ୍ନ କରାଯାଇଛି, ଯେପରି ତାଙ୍କର 'ଚତୁଷ୍ପଦୀ'ରେ । କବିତାର ଉପଜୀବ୍ୟ ମନୁଷ୍ୟର ଜୀବନ ଓ ସେଥିରେ ପରିବର୍ତ୍ତନ, ଯେଉଁ ପରିବର୍ତ୍ତନ ତାକୁ ମୁହ୍ୟମାନ କରୁଛି । ଏଠି ବିଶେଷ ଲକ୍ଷ୍ୟ କରିବାର କଥା, କବିଙ୍କର ଜୀବନ ଜିଜ୍ଞାସା ଯାହା ଇତିହାସ ରୂପରେ କାଶୀରେ ରୂପାୟିତ । କିନ୍ତୁ ଏଲିଅଟଙ୍କର ଲଣ୍ଡନ ବା ଆଲେକଜାଣ୍ଡ୍ରିଆ ପରି କାଶୀ ଆଜି ଅସତ୍ୟ ନଗର, ସେଠି "ବାବା ବିଶ୍ୱନାଥ ପଡ଼ିଛନ୍ତି ଶୋଇ", କାରଣ ଆଧୁନିକ ଯୁଗରେ ଈଶ୍ୱରଙ୍କର ମୃତ୍ୟୁ ଘଟିଛି, ଯେଉଁ ମୃତ୍ୟୁ କଥା ନିଟସେ କହିଥିଲେ । ସେହି ମୃତ୍ୟୁ ଆଧୁନିକୋତ୍ତର ଯୁଗର ଦୃଶ୍ୟସର୍ବସ୍ୱ ସମାଜର ପ୍ରତୀକ । ଏହି ପ୍ରତୀକାତ୍ମତାକୁ ଉପଲବ୍‌ଧି କରିବା ପାଇଁ ଯେଉଁ ଶୈଳୀର ପ୍ରୟୋଜନ ତାହା କବି ପ୍ରୟୋଗ କରିଛନ୍ତି ସାର୍ଥକ ଭାବରେ ।

ଏହି କବିତା ସମୂହକୁ ବିନମ୍ରୀଣ ପ୍ରକ୍ରିୟା ଦ୍ୱାରା ବିଶ୍ଳେଷଣ କଲେ ଯେଉଁ ଜୀବନ ବୋଧ ଉପଲବ୍‌ଧି କରିହୁଏ, ତାହା 'ଅନନ୍ୟା' କବିତାରେ ସ୍ପଷ୍ଟ । ଏଠି ଯେଉଁ ଚରିତ୍ରଟିକୁ କବି ଉପସ୍ଥାପିତ କରିଛନ୍ତି ସେ ହେଉଛି ଜଣେ ପ୍ରତ୍ୟାଖ୍ୟାତ ବ୍ୟକ୍ତି, ଯାହାକୁ ହୁଏତ କେହି ବୁଝି ପାରି ନଥିଲେ କାରଣ ସେଥିପାଇଁ ଯେଉଁ ସମ୍ବେଦନଶୀଳତାର ପ୍ରୟୋଜନ ତାହା ଆଧୁନିକ ଗଣ-ମନୁଷ୍ୟ ପାଖରୁ ଅନ୍ତର୍ହିତ ହୋଇଯାଉଛି । ଏଠି କିନ୍ତୁ କବି ତାହାର ସରଳତା ଦେଖିଛନ୍ତି :

ରଜ ଦିନମାନଙ୍କରେ
କାଠଯୋଡ଼ୀ ବନ୍ଧ ଫାସିଗଛ ଡାଳରେ
ଛୁଆପରି ଝୁଲୁଥାଏ ଅନନ୍ୟା ।

ସେହି ଅନନ୍ୟା ଯଦି ଷ୍ଟେଟ ଲଢ଼େଇରେ ମରିଛି, ସେ ବଞ୍ଚିଛି କିନ୍ତୁ ପ୍ରତୀକ ଭାବରେ ଆମର ପଙ୍କିଳ, ବିପର୍ଯ୍ୟସ୍ତ ରାଜନୀତିରେ । ସେହି ନୀତି (ଦୁର୍ନୀତି ?) ଯୋଗୁଁ ଶିବ ମଧ୍ୟ ଜାଗ୍ରତ ହୋଇ ରହିବାକୁ ନରାପଦ ମଣୁନାହାନ୍ତି । ସେଥିପାଇଁ ପତିତପାବନୀ ଗଙ୍ଗା ମଧ୍ୟ ଦୂଷିତା ।

ଏହି ଶ୍ଳେଷ ସବୁ କବିତାରେ ପରିଲକ୍ଷିତ, ଏବଂ ତାହା ଆଧୁନିକତାର ପରିଚାୟକ । ଶ୍ଳେଷର ପରିଣତି ଆସିଛି ଯେତେବେଳେ କବି ଉପଲବ୍‌ଧି କରିଛନ୍ତି ଯେ "ନିର୍ଗୁଣ ହେବା ବ୍ୟର୍ଥ—ଖାଲି ବ୍ୟର୍ଥ ।" ବିନମ୍ରୀଣ ଶୈଳୀରେ ଏଠି ଅନେକ ପ୍ରଶ୍ନ ଉଠାଯାଇ ପାରିବ—'ନିର୍ଗୁଣ'ର ବ୍ୟର୍ଥତା ସହିତ ସମ୍ପର୍କ କ'ଣ ? ବ୍ୟର୍ଥତା ଆସିଲେ ନୈରାଶ୍ୟ ଆସେ ନାହିଁକି ? ପୁଣି 'ଖାଲି ବ୍ୟର୍ଥ' କ'ଣ ଦ୍ୱିରୁକ୍ତି ନୁହଁ

ମନୋବୈଜ୍ଞାନିକ ଦୃଷ୍ଟିକୋଣରୁ ଏହାର ଅନ୍ୟ ତାତ୍ପର୍ଯ୍ୟ ଅଛି ? Despair ଏବଂ despondency ଭିତରେ ପ୍ରଭେଦ କ'ଣ ? କବିତାର ଛନ୍ଦକୁ ବିଶ୍ଲେଷଣ କଲେ ଦେଖାଯିବ ଯେ "ଖାଲି ବ୍ୟର୍ଥ" ଉପରେ ଯେଉଁ ଛନ୍ଦାତ୍ମିକ ଘାତ ବା Rhythmic stress ଦିଆଯାଇଛି । ତାହା 'ବ୍ୟର୍ଥତା' ଓ 'ଖାଲି ବ୍ୟର୍ଥତା' ମଧ୍ୟରେ ପାର୍ଥକ୍ୟ ସୂଚିତ କରୁଛି । ଏହା କ'ଣ ଆଧୁନିକୋତ୍ତର ଯୁଗର 'ପୂର୍ଣ୍ଣତା' ? ଏହି ଖାଲି ବ୍ୟର୍ଥତା କବି ମାନସରେ ପ୍ରକଟିତ ହୁଏ ଯେତେବେଳେ ତାହାର ମାନସୀୟ ଅଭିବ୍ୟକ୍ତିକୁ ଶୁଣିବା ପାଇଁ ବା ବୁଝିବାପାଇଁ ସହୃଦୟ ପାଠକ ନଥାନ୍ତି । ସେ ସ୍ଥଳରେ କବିତା ସ୍ୱଗତୋକ୍ତି ବା 'ଇଳା' ପରି ପୌରାଣିକ ବା Mythical ଚରିତ୍ର ସହିତ ସଂଳାପରେ ପରିଣତ ହୁଏ । କିନ୍ତୁ ଏହି dialogic ପ୍ରକାଶନ ଶେଷରେ monologic ପ୍ରକାଶନ । କବି ଓ ଇଳା ଅଭିନ୍ନ । କବିତାର ବାହ୍ୟ ସରଳତା ପଛରେ ରହିଛି ଜୀବନର ଜଟିଳ ଅଭିଜ୍ଞତା ଓ ଗଭୀର ଅନୁଭୂତି । 'ତରୁଣ୍ଡୁଆ' ପଢ଼ିଲା ପରେ Derek Walcottଙ୍କର କେତୋଟି ପଂକ୍ତି ମନେ ପଡ଼ିଲା :

The style, tension of motion and the dark,
inflexible direction of the world
as it revolves upon its centuries
With change of language, climate, customs, light
With our own prepossessions day by day
Year after year with images of flight,
Survive our condemnation and the sun's
exultant larks.

ଏହାହିଁ ଯଥାର୍ଥରେ 'ମାନସୀୟ ଅଭିବ୍ୟକ୍ତି' ।

ଏ-୩୧୫, ଶହୀଦ ନଗର
ଭୁବନେଶ୍ୱର
୧୨-୧୦-୧୯୯୩

ବିଧୁଭୂଷଣ ଦାସ

# ଚତୁଷ୍ପଦୀ

## ୧—ଅନ୍ୱେଷଣ

(କ)

ଶରତ୍ ଋତୁରେ
ମତେ ଖୁବ ଭଲଲାଗେ
ଏଇ ବାରାଣସୀ
ନାମ ଯାର କାଶୀ ।
ଶିବଙ୍କର ବ୍ୟାଘ୍ର ଚର୍ମ ପରି
ଆକାଶରେ ଖଣ୍ଡ ଖଣ୍ଡ
ବଉଦର ମାଳ ।
କାଶ ତଂଡୀ ଫୁଲ ଭରା
ଗଙ୍ଗା ନଦୀ କୂଳ ।
ପୃଥୁଳ ମାଳ ଗାଈ କିଏ
ହୁଏ ଯେ ଅଦୃଶ୍ୟ ...
ଢଗ୍‌ବଳାସ୍ଥରେ
ବସ୍ତ୍ରାଶତ ଟହ୍ୱମ ଖେଉରେ ।
ବାହାରିଲୁ ଇଳା ଆଉ ମୁଁ
ବିଶ୍ୱ ବିଦ୍ୟାଳୟର ଘାଟର ଆଡ଼କୁ
ସାନ୍ଧ୍ୟ ଭ୍ରମଣରେ
ଗଙ୍ଗା କୂଳେ କୂଳେ ।

କରଣ୍ଡା ଓ ବାବୁଲ ଗୁଦାରେ,
କଟଣ ମିଟର କରନ୍ତି ଚଢ଼େଇ
ମାଳ ଗଙ୍ଗାଜଳ
ସମୁଦ୍ର ପର···ମାରୁଛୁ ଉଜାଣି
ଜାଗିଛନ୍ତି ବ୍ୟାସଦେବ
ବାବା ବିଶ୍ୱନାଥ ପଢ଼ିଛନ୍ତି ଶୋଇ ।
ଶୁଅନ୍ତୁ···ଶୁଅନ୍ତୁ ସେ ଶିବ
ଉଠିଲେ ସେ ପୁଣି ତାଙ୍କୁ
କଏ ସମ୍ଭାଳିବ ?

ତାଙ୍କ ତାଂଡବ ନୃତ୍ୟରେ
ଏ ପୃଥିବୀ ରସାତଳେ ଯିବ ।
ଅବଶ୍ୟ ଆମେ ଶୀଘ୍ର ଫେରି ଆସିଲୁ
ଖାଲି ହାତରେ
ଥକା ତନ ଓ ମନରେ ।

(କାରଣ ଗଲା କଚ୍ଛ କହୁନଥିଲା,
ଖାଲି ଅବାକ୍
ସ୍ତବ୍ଧ ରହୁଥିଲା ।
ଟାଟା···  ଇ···  ଲ···
ପୁଣି ଦେଖାହେବ
ମୁଁ ଚଢ଼ିଲି ଆଗକୁ
ଯେହେତୁ ଠିଆହୋଇ ରହିବା
ମାନେ ସ୍ଥାଣୁ ହେବା ।
ମୁଁ ଖୋଜ ବାହାରିଲି
ମୋର ହଜିଲା ପିତାଙ୍କୁ ।

ବାଟରେ ପଡ଼ିଲା 'ଲଙ୍କା' *
ସେ ମୋଡ଼ଟା ବଙ୍କା,
ହନୁମାନ କର ଲେଉଟାଉ ଥିଲେ
ଅଳ୍ପଦୂରେ ଅସି ଘାଟ
ପବିତ୍ର ହେଉଥିଲା
ସହରର ନର୍ଦ୍ଦମା ଜଳରେ ।

ଶୁଣାଯାଏ...
ରାଜାପୁଅ ଥିଲ ଦିନେ
କିନ୍ତୁ ଏବେ ଭୃତ୍ୟ...
ଗୋଟିଏ ଗୃହର
ମା' ମୋର ବାସନ ମାଜେ
ଦାଂଡ ପହଁରେ
ଖଂଡିଏ ମସିଆ ଛୁଂଡା ଲୁଗାରେ
ସାରାଦିନ ବିତିଯାଏ,
କୁଡ଼ିଆ ଉପରେ ମାଳିଚୁ
ପାଣିକଖାରୁ ଲଟାଟି,
ଉଚ୍ଚ ଟିଲା ଉପରେ...ଛେଳିଟି
ଲଞ୍ଜ ହଲାଉଛୁ ।
ଚଣା ଆଉ ମକା ବାଲି ଭୁଡ଼ାର ଚୁଲିଟି
ହୁରୁ ହୁରୁ ହୋଇ ଜଳୁଛୁ ।
ପଣ୍ଡଳ କାଶୀର
ପ୍ରସିଦ୍ଧ ଜ୍ୟୋତିଷଙ୍କୁ—
ମହାଶୟେ, କ'ଣ ଲେଖାଅଛୁ
ମୋ ଭାଲ ପଟ୍ଟରେ ?

---

* ଗୋଟିଏ ମହଲ୍ଲାର ନାମ ।

"ମୃତ୍ୟୁ··ତୁମ ମାତା ପିତାଙ୍କ
ଆଗରେ ତମର ମୃତ୍ୟୁ"
—ଦେଲେ ସେ ଉତ୍ତର
(ହ୍ୱାସ୍ଟ, ପାଅନ୍ତୁ ଭେଟ
ମୋର ପିତାଙ୍କର ! )

ବଡ଼ ଖୋଚୁ
ଫୁଲ ତୋଳନ୍ତ ବେଳରେ
ମାଛ ଅନ୍ଧାରରେ,
ମନ୍ଦୁଲ ଝଡ଼ଇ ଯେବେ
ଟପ୍ ଟପ୍ ହୋଇ
ମୁଁ କହୁଲ ସାପକୁ
ଉଠ୍···ବେଳ ହେଲଣି
ଆଉ କୁଂଡଳୀ ବାନ୍ଧି
ଶୋଇ ରହ ନାହିଁ,
ମୋର ଲଣ ରହୁଥିବ
ଦରପୋଡ଼ା
ଅଧ ପୋଡ଼ା ହୋଇ ।
ତୁମକୁ ମନା କରଥିଲେ ନା କେଜେ
ଆସିବାକୁ ଏଇ ବଗିଚାକୁ ?
ଚୁପ୍‌କନ ଗୁଲ ଆସିଲ
ଆମକୁ ଶିଖାଇଲ
ଅଭକ୍ଷ୍ୟ ଫଳ ଚାଖିବାକୁ ?
ଲଜ୍ଜା ଖାରେ ଆମେ
ବସ୍ତ୍ର ପରିଧାନ କଲୁ
କହୁ କ'ଣ ସଭ୍ୟ ହେଲୁ !

ନହିଁ— କେତେଦୂର
ଦଶାଶ୍ୱ ମେଧ ଘାଟରୁ ହରିଶ୍ଚନ୍ଦ୍ର ଘାଟ
କେତେଦୂର
ରାମନଗରରୁ ଆନନ୍ଦ ଭବନ,
କିମ୍ବା ଶାନ୍ତିଘାଟରୁ ଶାନ୍ତିବନ ।

ଜଳୁଥିଲା ଚିତା
ଲେଲିହାନ ଜିହ୍ୱାନେଇ
ଅଧଜଳା ଶବମାନ ଗଡ଼ୁଥିଲେ
ଗଙ୍ଗାନଦୀକୁ ଧସେଇ
ତାର ପବିତ୍ରତା ··ବିଶୁଦ୍ଧତା
ପରୀକ୍ଷାର ପାଇଁ ।

ଏବଂ ଯାହା ଜଳୁଥିଲା
ଚଡ଼ ଚଡ଼ ମଡ଼ ମଡ଼ ହୋଇ
ଫାଟୁଥିଲା ଭୀଷଣ ଶବ୍ଦରେ
(ଗଙ୍ଗା କୂଳେ ଠାକ ରହୁଥିଲା
ଗୋଟିଏ ଅଘୋରୀ)
ମୁଣ୍ଡରେ କଳା ପଗଡ଼ି ବାନ୍ଧି
ଠିଆ ହୋଇଥିଲା ହାଡ଼ି
ଠେଙ୍ଗାଟିଏ ଧରି ।

ଶବଦାହକଙ୍କୁ···
କହୁଥିଲା ହକାରି—
ଆରେ, ପଇସା ଆଣ ଜଲ୍‌ଦି
ଲାଶ୍ ଜଳାଇବା ପାଇଁ ।
ଅବଶ୍ୟ ମୋ ଲାଶ୍
ତା'ଆଗରୁ ପାଲଟିଥିଲା

## ଫୁଲର ସ୍ୱଗତୋକ୍ତି

ପରସ୍ପର ଆମେ
ହେଉଁ କୋଳା କୋଳି ।
ଦସ୍ୟୁବନ୍ତ,
ଆମେ ସର୍ବସ୍ୱାନ୍ତ...
ରାଜ୍ୟରୁ ବହିଷ୍କୃତ ଓ ବିଭ୍ରାନ୍ତ
କିନ୍ତୁ...
ସତ୍ୟ ରକ୍ଷାରେ ପ୍ରସନ୍ନ ଓ ଶାନ୍ତ ।
ଦୂର ରାଜଘାଟ ପୋଲ ଉପରେ
ରେଲ ଗାଡ଼ିଟି
ହ୍ୱିସି ବଜାଉଛି,
"ଗଙ୍ଗା ମାତାଙ୍କୀ ଜୟ"
ପଇସା ପାଣିରେ ପଡ଼ୁଛି ।
ଏ ଦେଶରେ ତାଙ୍କୁ...କିଏ ଗୋଟାଉଛି ?
ଗଙ୍ଗା ଦର୍ଶନ୍ତୁ ମଜ୍ଜନ
କିନ୍ତୁ ଜଳପୂର୍ତ୍ତି,
ମାଲବ୍ୟଙ୍କ ପୋଲ ଅବଶ୍ୟ ଦେଖୁଛି
କିନ୍ତୁ ସ୍ୱର୍ଗ ଯାଇ ନାହିଁ,
ଗଲେ ରାଜ ନୂଆ କରି
ହୋଇବ ନିର୍ମିତ...
ରାମନଗର ଏବଂ ସାରନାଥ ସହ
କାଶୀକୁ କରିବ ସଂଯୁକ୍ତ
ନିର୍ମାଣ ହେବା ବ୍ୟର୍ଥ...
ଖାଲି ବ୍ୟର୍ଥ ।

—o—

## ୨ — ଜଳବନ୍ଧୁ

ଶୁଖିଲା ସମୁଦ୍ର ପରି
ବ୍ୟାପିଛି ଆକାଶ
ପୃଥିବୀର ଉତପ୍ତ
ସଙ୍କୁଚିତ ଚର୍ମରେ
ଦିଶୁଅଛି ଫାଟ ।
ଉପରୁ...ବରଷୁଛି ନିଆଁ
ପ୍ରବଳ ଖରାରେ
ଜଳୁଛି ଦୁନିଆଁ ।
ଧଇଁସଇଁ ହୁଏ ଏ ଧରଣୀ
ବାରବୁଲା ଜିଭହଲା
କୁକୁରଟି ପରି ।
କାହିଁପାଣି...କାହିଁ ଜଳ ?
ଗଙ୍ଗା ଛପିଲେଣି ଯାଇ
ଶିବଙ୍କ ଜଟାରେ ।
ନାହିଁ ଜଳ...
କାହିଁ ଗଲା ସ୍ଥଳ,
ଉତପ୍ତ ଏ ଧୂସର ବାଲି ।
"ଜଳ ବିହୁନେ ସୃଷ୍ଟି ନାଶ"
କହୁଅଛି ଶାସ୍ତ୍ର ।
ପୃଥୁଳ ଜଘନ...ଉନ୍ନତ ସ୍ତନ
ନାରୀମାନେ ଆସି

ରୂପାଂଶୁଙ୍କ କଥା ଯାଉଛନ୍ତି ଋଷି,
ହାତେ ତାଙ୍କ ଉପ ଥାଳୀ
ସ୍ୱର୍ଣ୍ଣ ମାଳା ମୋତି ମାଣିକ୍ୟର ।
ସାଗରେ ରହୁଛୁ ଜଳ
ମାଟିତଳେ ପାଣି
କଣଲେ ଉଦ୍ୟମ
ଏ ମଣିଷ ଅଣିପାରେ ଟାଣି —
ସ୍ମିତ ହାସେ କହିଲା ସେ ବାଳା
ରାଜକର୍ମଚାରୀ ଗଣେ
କରୁଣ କଟାକ୍ଷ ।

(ଖ)

ବିଦାୟ ରାଜଲକ୍ଷ୍ମୀ ..
ବିଦାୟ ଚନ୍ଦ ଲେଖା...ଜରତା
ହେବ ପୁଣି ଦେଖା । ବିଦାୟ...ବିଦାୟ ।
ନୌକା ଗଲେ ମନ୍ଦ ମନ୍ଦ
ଆସେ ଅଗୁରୁ ଚନ୍ଦନର ଗନ୍ଧ
ଚମକୁଛୁ ବାଳା
ଶପ୍ନନ କକ୍ଷରେ
ଯେପରି ଝଟକେ ବିଜୁଳି ।
ଯାଦୁକରୀ ଫିଙ୍ଗିଲା ତା' ପ୍ରାଣ,
ଏବଂ ଟାଣିଲା ବେଳେ
ପଡ଼ଲେ ଅଗଣିତ ମାଛ ।
ଝାଂଜ ଦେଲା ବାଳା ନେଇ
ତାର ପତାକାରେ ।
ସେ ଯେତେ ବେଳେ

ଭୁଲଇ ଆଣିଲୁ
ତା କୁମ୍ଭକ ନାଚ,
ପୁରି, ପେଡ଼ା, ଲଡ଼ୁ ବଳିଲୁ ମିଷ୍ଟାନ୍ନ
ବଢ଼ିଲି ଥକାଣୁ ।

ନଅ ନଅ ଏହା—
ଗୃଖ ଚୃଷି ବାଲ···
ଏ ନୁହେଁ ମାଂସ—ମାଂସଳ ଫଳ,
ଏ ନୁହେଁ କର୍ପୁର ଚନ୍ଦନ
ଭସ୍ମ ଏହା କରନ୍ତେ ଧାରଣ-
ଶରୀରେ ଘର୍ଷଣ ।

ଏ ନୁହେଁ ପାନ···କମ୍ବା ଭଙ୍ଗ
କରପାନ ସରବତ ସଙ୍ଗେ
ପାଇବ ଶାନ୍ତ ଓ ବିଶ୍ରାମ ।

ନିଦ୍ରା ଆଜି ଖୁବ ଭଲ
ଜାଗରଣ ଅତି କଷ୍ଟପ୍ରଦ ଓ ନର୍ମମ ।

ପାଲ ମେଲି ନୌକା ସବୁ
ଫେରନ୍ତେ ଜାଙ୍ଗଲ ପଥରେ
ମୀନ କେତନର କେତନ ଉଡ଼ାଇ,
ନଦୀ ସବୁ ପୂରିଥିଲେ ଜଳେ
କଲକଳ କଲକଲ କଲେ ।

( ଗ )

ସମସ୍ତ ରାଷ୍ଟ୍ରରେ ବ୍ୟାପିଲା ଖବର
ରେଡ଼ିଓ ଟିଭିରେ,
ଆଣିଛନ୍ତି କଣ ରାଜା
ଏକ ଜଳ ଯନ୍ତ୍ର
ବର୍ଷାହେବ ଶୁଣି ତାର ମନ୍ତ୍ର ।

ରାଜ ମହଲରୁ ଉଠିଲା ପାଲଙ୍କୀ
ବାଜୁଥିଲା ବାଜା

ବାହାରର ଶୋଭାଯାତ୍ରା ଏକ
ହାତୀ, ଘୋଡ଼ା ଅନେକ...ଅନେକ
ଫୁଟୁଛି ହାଉଇ ପିଚଲ କଣ୍ଢେଇ
ହଠାତ୍ ଝୁଲିଲା ପାଲିଙ୍କି
        ରାଜକେମା ଗଲେ ଚଢ଼ି ତେଣି
ଙ୍ଣ୍ଣ ଙ୍ଣ୍ଣ ଟିଂ ଟିଂ...ସେଦିନୁ
        ସେ ଘଣ୍ଟା ବାଜଇ ।

ସ୍ତ୍ରୀ ଧାସ୍ତା ଶୋଇଛନ୍ତି
        ପଲଙ୍କ ଉପରେ...
ଶାନ୍ତା ଶାନ୍ତରେ ଶୋଇଛି ପାଖରେ
ବାହାରେ ଭୀଷଣ ଝଡ଼
        ଭୀଷଣ ବରଷା
ଶୁଖିଲା ଜମି ହବୁ
        ହୋଇ ଅଛି ଓଦା,
ଧାନ, ଚଣା, ଗହମାଦି ଶସ୍ୟ
ହେଉଥିଲେ ଅଙ୍କୁରିତ
        ତାଙ୍କ ବନ୍ଦ ପ୍ରକୋଷ୍ଠରେ ।

ଆ— ସଂଘର୍ଷ

(କ)

ଜଳନ୍ତା ମଶାଲ-ଧରି
କେହି
ଖସିଆସେ ଆକାଶରୁ
ଏ ଧରା ବକ୍ଷକୁ ।

ସ୍ବୈର···ସ୍ବୈର···ସ୍ବୈର
ସୃଷ୍ଟିଆଡ଼େ ମୋର୍ ।
ଏ ସେହି ଅଗ୍ନି···
ଯାହାର ଉଷ୍ମତା
ଆମକୁ ଦିଏ ଜୀବନ,
ଅନ୍ନ ଓ ବନ୍ଧନ ।
ସ୍ବୈର ନୁହେଁ ମୁଁ
ମାନବ ସନ୍ତାନ
ମାଧ୍ୟମ ମାତ୍ର ଏକ
ମଶାଲ ବାହକ ।

(ଖ)

ତା ହାତରେ ଥିବ
ଖାଲି ଏକ ବୀଣା
ଯା ମଧୁର କ୍ୱଣରେ
ହୋଇଥିଲେ ସୁପ୍ତ
ସବୁ ଯମ ଦୂତ !
ସ୍ୱର୍ଗ ସୁଖ
ହେଲା ପରାଭୂତ ।
ଫେରି ଆସେ ଥରେ
ଅବଜ୍ଞାତ,
ସେ ମୃତ୍ୟୁ ଲୋକକୁ
ଉଲ୍ଲସିତ ହୃଦୟରେ···
ପାଖେ ତାର ପ୍ରିୟା
ଭାସିଯାଏ
ଆନନ୍ଦ ସାଗରେ ।

ଗ)

ମୁଁ ମଶାଲଟି ଜମ୍ବା
ବୀଣା ବାଦକ ନଥିଲି,
ଥିଲି ଦର୍ଶନାଭିଳାଷୀ
ଗ୍ରନ୍ଥ ଏକ,

ଯମ ଦେବତାଙ୍କ କବାଟ ବାଡ଼େଇ
ପଚାରିଲି—ମହାଶୟ,
ଘରେ ଅଛନ୍ତି କି ?

ଯାଇଛନ୍ତି ଗସ୍ତରେ
ରାଜକାର୍ଯ୍ୟେ ଅବା
ଭୋଟ ପ୍ରଚାରରେ ।
ଏ ମଣିଷ ଅଖିଆ ଅପିଆ
ପଡ଼ି ଅଛୁ ଧନ୍ନା ଦାନ ଧରି ।

ଧନ୍ନା ଦାନ...
ତାହାଲେ ମାଗ ତିନ ବର
କହିଲେ ଧର୍ମ ଅବତାର ।

ମାଗୁଛି ପ୍ରଥମ ବର
ରହୁ ଶାନ୍ତି ଘରେ ।
ଫେରନ୍ତା କାଳରେ ମତେ
ଯେପରି ଚହଲନ୍ତି ସମସ୍ତେ ।

(ସ୍ୱର) ତଥାସ୍ତୁ...
ଦ୍ୱିତୀୟ ବର...
ମୋ ନାମରେ ଜଳୁ ଏକ ଅଗ୍ନି
ମାନେ ବତି ଖଣ୍ଡ,
ଅଧ ଉଛ ଆଉ ଅଣ୍ଡ ।

(ସେ ଖବର ଛପୁ ଖବର କାଗଜେ...)
(ସ୍ୱର) ତଥାସ୍ତୁ...

ତୃତୀୟ—
କିପରି ଜାଣିବି ପ୍ରଭୁ
ମୃତ୍ୟୁର ରହସ୍ୟ ।
ବେଳକାଳ ବାଟଘାଟ
 ନାହିଁ ଭାରି କିଛି ?

ହଠାତ୍ ବିସ୍ଫୋରଣ
 ବନ୍ଧୁକ ଆବାଜ
ଲୋକବାକ ପଡ଼ୁଥିଲେ ଟଳି,
ଏ ରହସ୍ୟ
ଫେଡ଼ି କହ ପ୍ରଭୁ ।

ମୃତ୍ୟୁ ଦେବ ହେଲେ ଖୁସି
 ଆଲିଙ୍ଗିଲେ ମୋତେ ··
ଏବଂ ପିଠି ଥାପୁଡ଼େଇ କହିଲେ—
 ସାବାସ୍ ବଚ୍ଛା,

 ଖାଲି ଗୁଲକ୍ ଅଛୁ
ବିଜ୍ଞାନ···ବିଶେଷ ଜ୍ଞାନର
 ଜଣାଅରୁ ସାମ୍ରାଜ୍ୟ
ଦେଶ ତୋର
 ରହୁ ଅବିଭାଜ୍ୟ ।

ଏବଂ ଯେତେବେଳେ ମୁଁ
ଫେରିଲି ଘରକୁ,
ମୋ ନାଆଁରେ ଯଜ୍ଞ କୁଣ୍ଡ
 ଜଳୁଥିଲା ଏକ,
ଧୂପ, ଧୂମ ବ୍ୟାପୁଥିଲା ।

ଘିଅ ଦୁଧ ବହୁଥିଲା
 ସାରା ଆଶ୍ରମରେ ।

ଫଳଫୁଲ ଭରି ଥିଲା
 ବୃକ୍ଷ ଓ ଲତାରେ ।

ଆଶ୍ରମ ପ୍ରାନ୍ତରେ ଉଚ୍ଚ
ନିଜେ ନାମ ଦେଲୁ
ଜନ୍ମଦେଇ ପାରେ ଯେହୁ
ଖାଦ୍ୟ ଏବଂ ସୈନିକ ଉଭୟ,
ନାହିଁ ଭୟ···ଆରେ
ନାହିଁ ଭୟ ।

ଏଥିଲା ଖାଲି
ମୋହର ପ୍ରୟାସ
ନଚିକେତା ନାମ ମୋର
ମାନବର ବାହୁବଳେ ମୋର
ଅଟଳ ବିଶ୍ୱାସ ।

## ୪—ଆତଙ୍କ

ଉଚ୍ଚ ପାହାଡ଼ ଶିଖରରେ ବସି
ମେଷ ପାଳକ ବୁଢ଼ାଟି
ବଂଶୀ ବଜାଏ ଏବଂ
ତାର ବଂଶୀ ଧ୍ୱନି ଶୁଣି
ଲମ୍ବା ବଙ୍କା ଧାଡ଼ି ବାନ୍ଧି
ଚରନ୍ତି ଗାଈ ଓ ମେଣ୍ଢା ପଲ ।

ଯେତେବେଳେ ବଂଶୀ ସ୍ୱର
ନୀରବ ହୋଇ ଆସିଲା
ଏରକାର ବନେ ଲଗିଲା କନ୍ଦଲ
ଧ୍ୱଂସ ହେଲେ
ଯଦୁକୁଳ ଦଳ ।

ଖଣ୍ଡ ଖଣ୍ଡ କବନ୍ଧ ଓ ମୁଣ୍ଡ
ଭାସିଲା ସମୁଦ୍ର କୂଳରେ
ରକ୍ତ ପ୍ରବାହରେ ।

ଅନନ୍ତ ପଣବନ୍ଦିତ କଲେ
          ମନ୍ତ୍ରକର ଘର
କାଳୀ ଶୋଷିଲେ ରକ୍ତ
     ଜିହ୍ୱା ତଲାଓ୍ୱାରେ ।
ସର୍ବେ ଆମେ ସ୍ତୁତିକଲୁ —
ଯାଦେବୀ ସର୍ବଭୂତେଷୁ ଶକ୍ତି ରୂପେଣ ସଂସ୍ଥିତା
ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋନମଃ ।

ଏ ମୂର୍ଖଙ୍କୁ ରକ୍ଷା କର ମାତ,
ନିଜ କୂଳେ କରନ୍ତି ଯେ ଧ୍ୱସ୍ତ ।

ମାଲଗ୍ତ ଲଟାରେ
          ଲାଲ ହରଣର କାନ
               ହେଲ ଛଟ ଛଟ
ତାପରେ···ଜ୍ୟୋଛ ଅନ୍ତର୍ଦ୍ଧାନ
          ସବୁ ସୁନ୍ ସାନ ।
ଶିକାରୀଟି ମୁଣ୍ଡପୋଛ
          କାନ୍ଦୁଥାଏ ବସି ।
ଫେରିଲେ ସେ ବାଟ ଦେଇ
          ଧନୁର୍ଦ୍ଧର ମହାବୀର
ଟେକି ନପାରନ୍ତି ପିଏ
          ନିଜ ଧନୁଟିରେ ।

ନାରୀଗଣ ହୋଇଲେ ଲୁଣ୍ଠିତା
ହରାଇ ଧନ ଓ ଯୌବନ
ସନ୍ତ୍ରାସ ଉପଦ୍ରବ
          ବଢ଼ିଲା ସେଦିନୁ ।

କିଏ ଦେବ ଆଲୋକ ଆମକୁ
          କିଏ ବଞ୍ଚାଇବ ?

ରଜା ଦେଶେ ଆସିଥା ଗୁଣ୍ଡାଳ
ହାତେ ଧର ଲୁହାର ମୂଷଳ

ପିନ୍ଧୁଥିଲା ଜର୍ମିମ ଖଦରେ
ଗାନ୍ଧି ଏବଂ ବୁଦ୍ଧଙ୍କୁ
ଶୁଭୁଥିଲା ଆର୍ତ୍ତନାଦ ।

ରଥରେ ଯିବା ରାଜ ପୁରୁଷ ଜଣକ
ହଠାତ୍ ଓହ୍ଲାଇ କହିଲେ—
କିରେ, ମୋ ରାଜ୍ୟରେ
କରିଲୁ ପ୍ରବେଶ,
ଛାଡ଼ ତୋ ପ୍ରାଣର ଆଶ ।

ସୁଫଲଧାରୀ ଲମ୍ବା ହୋଇ ପଡ଼ିଗଲା
ପାଦ ତଳେ ରାଜାଙ୍କର
ଏବଂ କହିଲା—
ପ୍ରଭୁ କେଉଁଠି ମୋ ସ୍ଥାନ,
ପିଲାପିଲି ଏତେ···ପରିବାର ଜନ ।

ଯାଅ ତେବେ ବଜାର ମଝିକୁ
ଯେଉଁଠି ଶୁଭୁଛି ଶବ୍ଦ ପଣାକାଠି
କମ୍ପା ମଦ ବୋତଲର ।

ଅଥବା···ଧାରଣା ଦିଅ
ସୁନା ଦୋକାନ ଆଗରେ,
(ଟଙ୍କା ଯେଉଁଠି ପାଲଟେ ଡାଲର) ।

"କିପରି ଚଳିବ ପ୍ରଭୁ ଏତିକରେ"
ଯାଅ ତେବେ ବେଶ୍ୟା ପଡ଼ା
ହୁଅ ଦରବାନ କିମ୍ବା
କାମକର କଂସେଇ ଖାନାରେ ।

ସଦଳବଳେ ରାଜା ଗଲେ ଚାଲି
ଉଡ଼ିଲା ଅନେକ ବାଲି ।

ସେ ଖୋଜୁଥିଲେ
ଗୋଟିଏ ବିରାଟ ଦୀପ

ଯାର ଲଞ୍ଜ ଲମ୍ବିଛି
ସିଗ୍ରେସିମା ଯାଏଁ ।
ଖଣ୍ଡ ଖଣ୍ଡ କରିବେ ସେ ତାକୁ
ଭାଷିଲେ ରାଜନ —
ଦଣ୍ଡ ଶୋଭେ ଏବର ପ୍ରଜାଙ୍କୁ
କ୍ଷମାରେ କି ଚଳିବ ଶାସନ !

ଦିଅ ଟାଙ୍ଗି ଦିଅ ମୃତ ସର୍ପ
ଏଇ ଋଷି ଆଶ୍ରମରେ
ବନ୍ଧୁଏ ଦେବାକୁ ଜଳ ତୃଷାର୍ତ୍ତିରେ ··
ଯାର ନାହିଁ କାଣ୍ଡ ଜ୍ଞାନ ।

ସେହି ଦିନୁଁ ଧାଇଁଛନ୍ତି ରାଜା
ପଛେ ପଛେ ଗୋଡ଼ାଇଛି
ସାପ ଶାପ ହୋଇ ।

ରକ୍ଷା ନାହିଁ ?
ଏ ଅତି ନିଭୃତ କକ୍ଷ
ଲୌହରେ ନିର୍ମିତ
ଗୁମ୍ବଜ ଉପରେ
ସର୍ପ କିମ୍ବା ସରୀସୃପ କିପରି
କରିବ ପ୍ରବେଶ ?
ପବନ ନ ପଶିପାରେ
ଝୁଙ୍କ ଝରକା ଫାଙ୍କରେ ।
କିନ୍ତୁ ··· ··· ଅଜାଣତ
ହୋଇଗଲା ଆଗତ
ଲେନ୍ଧିତ ନଷ୍ଟୁ ······
କୃଷ୍ଣ ବର୍ଣ୍ଣ ରୂପ
ଉଠିଲା ଫୁତ୍କାର
ଛପିଥିଲା ଯିଏ
ମନୁଷ୍ୟ ଭିତରେ

ଜଗୁଆଳି ହୋଇଥିଲା
ଉଦ୍ୟାନ ଦୁଆରେ ।
ତେବେ......
ପଣ୍ଡିତ ହେଲେ ପଣ୍ଡିତ
ଜିଣିଗଲେ ରାଜା...ହାରିଗଲେ ସପ
ରାଜା ମାଗଲେନି ତାରେ
ମନୁଷ୍ୟ କି କେବେ
ଜାନୁଆର ହୋଇପାରେ ?
"ସାପଟା ଖାଲି ହାଓ୍ୱା ଥିଲା
ଶରୀର ତ୍ୟାଗିଲେ ରାଜା
ପୂଜା, ପାଠ, ପୁରାଣ ପୋଥିରେ"
ଛଟପଟ ହେଲା ଯେବେ ସର୍ଣ୍ଣ ହଂସ
ପାଲଟିଲା ସାଦା ପର
ତାର ସ୍ୱର୍ଣ୍ଣ ପକ୍ଷସବୁ,
ମୁଣ୍ଡ ପିଟି କାନ୍ଦର ବ୍ରାହ୍ମଣୀ
ହଂସର ଘରଣୀ ।
ପରିଶ୍ରମ କାତର ଲୋଭୀ
ଲୋଭଖୋର ଏମିତି ଜାଣି
ଜାଣେ ନାହିଁ ପଶୁପକ୍ଷୀ ସହି
ରହିବ କେମିତି ।
ଚାଲିଗଲା ପୁଣି ହଂସ ହିମାଳୟ ଡେଇଁ
ଆଲପସ୍ ଶିଖରେ
ବସିଲା ସେ ଯାଇ ।
ମୋ ପରି ଲାଗିଲା ଯାହା
ଏ ପରିଭ୍ରମଣ,
କହୁ କହୁ ଇଲା ମୋ ବାନ୍ଧବୀ ।
"ଘର ଭଲ ... ଘରଭଲ ...
ତୁମେ ଡାକପାର ମେତେ
ବାନ୍ଧବୀ ନୁହଁ ବନ୍ଧୁ ବୋଲି ।
କିନ୍ତୁ......ଯାହା ମୁଁ ଦେଖିଲି

ତାହା ଜମା ନହୁଏ ନାହିଁ
ଅନୁଭବ କର ହୁଏ ଖାଲି,
ମାଧବ ରାଉଙ୍କ ଗୁମ୍ଫାରୁ
କୁତୁବ୍ ମିନାର ଉପରୁ
କପିଳାସ ଆଉ ହିମାଳୟ
ଉତ୍ତୁଙ୍ଗ ଶିଖରୁ
ମୁଁ ଇଳା, ମାତା-ପିତା ପୁରୁରବାର
ସବୁ ସ୍ପଷ୍ଟ ଭାବେ ଦେଖିପାରେ
(ନୁହେଁ ମୁଁ ଅନ୍ଧ......ଟେରେସିଅସ)
ଉଭୟ ଅନୁଭୂତ ମୋର
ନାରୀକୁ ଭଲପାଏ ପୁରୁଷ ରୂପରେ
ନାରୀ ହୋଇ ପୁରୁଷକୁ
ପ୍ରେମ କରିପାରେ ।
ଭଲ ପାଇବାର ଜାଣେ
ଏଇ ମଣିଷକୁ
ପୁରୁରବା...ମୋର ପ୍ରିୟ ପୁତ୍ର !
ଉର୍ବଶୀର ପଛେ ହୋଇବୁନ ଦାସ୍ୟା,
ପବନ ସେ, ଖାଲି ଏକ ମାୟା
ପ୍ରେମ କରି ଶିଖ ମନୁଷ୍ୟ ଜାତିକୁ
ପଶୁପକ୍ଷୀ ..ସଦ୍ୟୋଜାତ ଏବଂ
ତୋ ପରିବେଶକୁ ।
ଓଁ ସହନାବବତୁ......ସହନୌଭୁନକ୍ତୁ
ସହ ବୀର୍ଯ୍ୟଂ କାରବାବହୈ
ତେଜସ୍ୱି ନାବଧୀତ ମସ୍ତୁ......ମା’ ବିଦ୍ୱିଷାବହୈ ।

□ □ □

# ଓ ଅନ୍ୟାନ୍ୟ କବିତା

## ଝୁନଅପା

ଝୁନ୍ନ ଅପା,
ତୁମକୁ ମୁଁ ଦେଖିଥିଲି
ବନ ବନାନ୍ତରେ
ଯେତେବେଳେ ତର୍କ କରୁଥିଲ
ଗାର୍ଗୀ ଓ ମୈତ୍ରେୟୀ ସଙ୍ଗରେ ।

ଶ୍ରେୟ ତୁମର ପ୍ରେୟ ଥିଲା ।
ଆଉଦିନେ ଭେଟ ହେଲା
ଅନ୍ୟ ଏକ ଋଷି ଆଶ୍ରମରେ
ଯେତେବେଳେ ଝରଣାରେ
ତମ ପାଦ ଖସିଯାଇଥିଲା,
ଏବଂ ମୁଦିଟି
ହଜିଯାଇଥିଲା ।
ତା ପରେ ଅବଶ୍ୟ
ଅନେକ ଦିନ ବିତି ଯାଇଅଛି ।

ତୁମେ ବୀରନାରୀ ପରି
ଯୁଦ୍ଧ କରୁ ଥିଲ
ଆତତାୟୀ ବଦମାସ ସଙ୍ଗେ
ଛୁଆର ଖଣ୍ଡାଟିଏ ଧରି...
ଧନ୍ୟ ନାରୀ !
ପୁଣି ବହୁବର୍ଷ ପରେ

ଆଜ ତୁମେ ଦେଖାହେଲ
ହଠାତ୍ ଗଣୀହାଟ ପୋଲ ନିକଟରେ ।
ହାତରେ ଗ୍ଲାଟଟିଏ ଧରି
ଗୋଟିଏ ପିଲାଙ୍କୁ ନେଇ
ଯାଉଛ ଏଲ୍. ପି ସ୍କୁଲକୁ ।
ଦୁଇଟି ବଡ଼ କମ୍ବା ପିଆଜରେ
ତମ ଦିନ କଟିଯାଏ ।
ସନ୍ଧ୍ୟାରେ ଯେତେବେଳେ
ଟ୍ୟୁସନ୍‌ରୁ ଫେର
ଗଲୀ-କୁକୁର ଭୁକୁଥାଏ,
ଷ୍ଟ୍ରୀଟ୍ ଲାଇଟ୍ ଲିଭି ଅଁସୁଥାଏ ।
ମଦ୍ୟପାନ୍ତ ବସ୍ତାର ଦରଜା
ରାତି ସାରା ଖୋଲା ଆଉ
ବନ୍ଦ ହେଉଥାଏ ।
ଲଣ୍ଠନ ବତୀଟି ଜଳି
ଧୂଆଁ କରୁଥାଏ ।

— — —

ପୂର୍ଣ୍ଣଅପା ନିଦଯାଏ
ପାହାନ୍ତା ପହରେ···
୯ଟା ବେଳେ ଅଫିସରେ ଛୁଟି
ଝାଡ଼ୁଝୁଡ଼ି ହୋଇ
ନିଜକୁ ଶୁଦ୍ଧ କରେ
ତାଳଦଣ୍ଡା ମହାନଦୀ ନୀରେ ।

□□□

## ଅନନ୍ୟା

ଅନନ୍ୟା
ଗଣ୍ଡି ସୂଅ କି ନୁହେଁ
ସେ କଥା ମୁଁ ଜାଣେନା ।
କିନ୍ତୁ ସକାଳୁ ତାକୁ ଦେଖେ
କଟକ ବସ୍‌ଷ୍ଟାଣ୍ଡ ଦୋକାନରେ
ଧମକେଇ ଜଲଖିଆ ଖାଏ ।
ସନ୍ଧ୍ୟାରେ ଶ୍ମଶାନ କାଳୀଙ୍କଠାରେ
କ'ଣ ଗୁଣ୍ଡୁ-ଗୁଣ୍ଡୁ ଗାଏ
ଏବଂ ଗାଢ଼ ଅନ୍ଧାରେ ହଜିଯାଏ
କାଠଯୋଡ଼ୀ ବାଲିରେ ।
ମାଇପିଙ୍କୁ ହଇରାଣ କଲା
ରିକ୍ସା ବାଲାଙ୍କୁ
ଛକରେ ଠିଆ ହୋଇ
ନାଲି ଆଖି ଦେଖାଇଥାଏ ।
ଗ୍ରେଟ-ଗ୍ରେଟ ଟୁଆଙ୍କୁ
ଗାଡ଼ି ଆଗରୁ ଟାଣି ଆଣି
ଅନେକ ଥର କଚଡ଼ା ଖାଏ
ଅନନ୍ୟା ।
ବିଚ୍ ବଜାରରେ
ଷଣ୍ଢଙ୍କୁ ଲଢ଼େଇ ଦେଇ
ମୁଣ୍ଡରେ ଗାମୁଛା ଗୁଡେଇ

ଚୁପ୍ ଚାପ ସବୁ ଦେଖୁଥାଏ ।
ବାଲ୍ୟଯାତ୍ରାବେଳେ ହାରିଷାଣି
ଧାଗ୍ରପଡି ଜେଲଯାଏ ।
ମାମୁଘରୁ ଫେରି
ମାଡୁଆଲୀ ଦୋକାନ ଆଗରେ
ଜଣ ମୋଡୁଥାଏ ।
ହେମିଡକା ଦିନ...ଆଉ ଆସିବ
ପଫେସର ବରୁ ! କହୁ
ଦୁର୍ଗାପୂଜା ଦିନ ମାତାଲ ହୁଏ,
ସାହୁ ମେଢ଼ ଭସାଣି ବେଳେ
ହଲି ହଲି
ଆଗେ ଆଗେ ଯାଏ ।

ରଜ ଦିନ ମାନଙ୍କରେ
କାଠଯୋଡ଼ି ବନ୍ଧ ଫାସିଗଛ ଦୋଳିରେ
ଛୁଆ ପରି ଝୁଲୁଥାଏ,
ଅନନ୍ତା ।
ଶୁଣିଲି...
ବିଗତ ଭୋଟ ଲଢ଼େଇରେ
ଖଦଡ ପିନ୍ଧି
ଅନନ୍ତା ମରିଛି ।
କିନ୍ତୁ ଆଜି ପୁଣି ତାକୁ ଦେଖୁଛି—
ଦେହରେ ଗେରୁଆ ପାଇଜାମା
ଓ ପଞ୍ଜାବୀ ପିନ୍ଧି
ଘଣ୍ଟିହାଟ ଓ ଗୁଡ଼ଲଆ ଟନ୍ତ୍ର
ମଝିରେ
ପଇନ୍ତର ମାରୁଛି · ଅନନ୍ତା !



## ବାଲ୍ମୀକି

କାହାର ଅଣ୍ଟା ପାଣିଚୁଟିକାରେ
ମୁଁ ହଇହୁଙ୍କା
ଗୁଡ଼ ହଠିଲି ।
ମୋର ଆଖି ଅଗରେ
ଘଟଣା ସ୍ରୋତରେ ବହିଗଲା
ସମସ୍ତ ଚେତନା ।
ପ୍ରଭୁ, ହରିନିଅ ଏଇ ଦିବ୍ୟଦୃଷ୍ଟି
ନେଇ ଯାଅ ଜ୍ଞାନ ଚକ୍ଷୁ
ମୋତେ କରିଦିଅ ଅନ୍ଧ ।
ମୁଁ ଆଉ ଦେଖି ପାରୁନାହିଁ, ପ୍ରଭୁ
ତୁମର ଦୁର୍ଦ୍ଦଶା, ହତାଶା··· ।
ଜଟା ଜୁଟ ଫଳଗ୍ରାସ
ଚଉଦବର୍ଷ ବନବାସ ।
ଅଗ୍ନି ପରୀକ୍ଷା,
ଗର୍ଭିଣୀ ରାଣୀର ନିର୍ବାସନ
ଘୋର ଅରଣ୍ୟରେ ।
ଏସବୁ କ'ଣ ଦେଖୁଛ ପ୍ରଭୁ,
ହରିନିଅ ଏଇ ଦିବ୍ୟ ଦୃଷ୍ଟି
ଲେଖିବାର ପ୍ରୟୋଜନ ନାହିଁ
ଏ ଯନ୍ତ୍ରର ରାମାୟଣ ପୋଥି ।



## ଉଦ୍ଭାଇକା

୧

ବର୍ଷକୁ ବର୍ଷ
ଅନ୍ଧ ହର୍ଷ
ତୁମର;
କାଠ, ଡାଙ୍ଗ, ପାଳ ସାଉଁଟି
ମତେ ଜଳେଇବ
        ଗାଁ ମୁଣ୍ଡରେ
ସଂକୀର୍ତ୍ତନ ଭଗ୍ନ ତୁଣ୍ଡରେ ।
ହେଲେ, ମତେ ଜଳାଇ ପାରିବ ନାହିଁ
ଜଳାଇ ପାରିବ ନାହିଁ ।
କାରଣ··ମୁଁ ଯାକୁ
ଧରିଛି କୋଳରେ—
ସେ ନାମ କରେ
ସେ ସ୍ୱମ ବୁଝେ
ମୁଖେ ତା'ର ହରି
ତାକୁ ତୁମେ ପାରିବନି ଧରି
            ପାରିବନି ମାରି ।
ଆଉ ମୁଁ ଏମିତି
ତାକୁ କୋଳରେ ଧରି
ତାକୁ ବଞ୍ଚେଇ ବଞ୍ଚିଥିବ
            ଜନ୍ମୁଥିବା

ତମର ଝଆଁରେ
ଯୁଗ ଯୁଗ ଧରି ।

୨

ତୁମେ ଦେଖୁଛ
ମୋର ରକ୍ତ କେମିତା ?
ନାଲ, ସାଗୁଆ, ହଳଦଆ
ବାଇଗଣୀ, ରଙ୍ଗ ବେରଙ୍ଗର ।
ବାଷ୍ପ ହୋଇ ପଡେ
ପାଲଙ୍କି ବାହକର
ଧୂସର ମୁଣ୍ଡରେ —
ଚଉତର ଓ ମନ୍ଦର ଆଗରେ
ଯୁବକ ଯୁବତୀଙ୍କ ଧାଁ-ଦଉଡ଼ରେ ।
ଛୁଆଙ୍କ ପ୍ଲାଷ୍ଟିକ୍ ବୋତଲ ଓ
ବୁଢ଼ା ବୁଢ଼ୀଙ୍କର ପାଚିଲା ବାଳରେ ।
ନାଲି ମୋର କଳା ପାଲଟି ଯାଏ
— ଦିନ ଶେଷରେ ।
ପୁଣି ଫୁଟି ଉଠେ କଅଁଳିଆ ପତ୍ର
ନାଲିଆ ପଳାସ ଫୁଲରେ
ପ୍ରତିବର୍ଷ ନବ ବସନ୍ତରେ ।

□□□

 

## ବୃହନ୍ନଳା

ମୁଁ ଏକଦମ ମନାକରି ଦେଇଛି,
କେହି ଯେମିତି ନ ଆସନ୍ତି
ଏଇ ଶମି ବୃକ୍ଷ ତଳକୁ—
ଖାସ୍ କରି ମୂଷା ଓ ଝିଇଙ୍କୁ ।
ଭଲ୍ଲୁକ ଓ ସାପ ମାନଙ୍କୁ ସ୍ୱାଗତ···
ସେମାନେ ହେପାଜତ୍ କରନ୍ତୁ
ଏଇ କୋରଡ଼ର
ଅସ୍ତ୍ରଶସ୍ତ୍ର ମାନଙ୍କୁ ।
ହୁଏତ କେତେବେଳେ
ଦରକାର ପଡ଼ିବ
ଦେଶ ବା ରାଷ୍ଟ୍ରକୁ ।

ଆଜି ଶୁଣୁଛି—
ଭୀଷ୍ମ, ଦ୍ରୋଣ, କର୍ଣ୍ଣ, ଶଲ୍ୟଙ୍କ ସହ
ଦୁର୍ଯ୍ୟୋଧନ ଆସୁଛି,
ଅକ୍ଷୌହିଣୀ ସେନା ନେଇ ।
ହେଉ, ଆସୁ ।

ମୁଁ ନର୍ତ୍ତକୀ···ବୃହନ୍ନଳା
ଯା'ର ଲୁଣ ଖାଇଛି ବରଷେ,
ଲଢ଼ ବନ ତା'ର ପାଇଁ
ହରଷେ ?

ସେଦିନ ମୁଁ ଶାନ୍ତିରେ ଶୋଇବି
ଯେଉଁଦିନ ଏ ଧରଣୀ କମ୍ପିବ
ଘୋଡ଼ାମାନଙ୍କ ହ୍ରେଷାରବ ଓ
ଧନୁଷ୍ଟଙ୍କାରରେ ।

ମୁଁ ସେଦିନ ପ୍ରତୀକ୍ଷାରେ ଅଛି
ଯେଉଁଦିନ ନାରୀ ହେବ ନର
ନପୁଂସକ ହେବ ଧନୁର୍ଦ୍ଧର
ଏଇ ମାଟି (ମୁଁ ଅଛି ଯେଉଁଠି)
ଏଇ ପବନ (ଯାହା ମୋ ନିଶ୍ୱାସ)
ଏଇ ଆକାଶ (ଯାହା ଆମ ବାସ)
ତା'ର ପରିଣତି
ଦେଖିବ କିପରି ?
ମୁଁ ରହିଛି ଅପେକ୍ଷାରେ
ସେଇ ଆଗାମୀ ଦିନକୁ ।



## ହିରଣ୍ୟକଶିପୁ

ଚନ୍ଦ୍ରଗୁପ୍ତ ଯାହା ଲେଖେ
ଯମରାଜ ସେଥିରେ
ହସ୍ତାକ୍ଷର କରି ଦିଅନ୍ତି ।
ତପସ୍ୟାରେ ଖୁସି ହୋଇ
ବ୍ରହ୍ମା ଦିଅନ୍ତି ଅମର ବର,
କିନ୍ତୁ ସମସ୍ୟା ବଢ଼ି ଯାଏ
ବିଷ୍ଣୁଙ୍କର ।

କଶିପୁ ଆସ୍ଫାଳନ କରେ
ମୋର ମୃତ୍ୟୁ ନାହିଁ
ଅସ୍ତ୍ରରେ ଶସ୍ତ୍ରରେ ଦିବସରେ
କିମ୍ବା ରାତିରେ ।
ସୁର, ନର, ବାନର
କେହି ନୁହେଁ ମୋର ଘାତକ ।
ମୁଁ ରାଜ ଚକ୍ରବର୍ତ୍ତୀ
ମୋର ବାକ୍ୟ ହିଁ କାନୁନ୍ ।

ଏ ରାଜ୍ୟରେ ଭଜନ ପୂଜନ ବନ୍ଦ
ହରି ନାମ ନିଷେଧ...
ଯେ ଉଚ୍ଚାରଣ କରିବ ସେ ନାମ
ଦଣ୍ଡ ଦିଆଯିବ ତାକୁ
ହାତୀର ପାଦରେ ।

କାହିଁ ଘର···କାହିଁ ସେ ଈଶ୍ୱର ?
ସଜ୍ଜଗୃହରେ ମୁଣ୍ଡ ଟେକ
ଗ୍ରେଟ ପିଲଟିଏ କହିଲା—
ଏ ଘମୁରେ ଅଛନ୍ତି ଭଗବାନ
ବଡ଼ ବଡ଼ ନଖ ତାଙ୍କ
ଲମ୍ବା ଲମ୍ବା କାନ ।

ଗ୍ରେଟ ପିଲଟିକୁ
ତାଡନ୍ତି କରେଇରେ
ଫିଙ୍ଗି ଦଆଗଲା,
ରାଜାଙ୍କ ଆଜ୍ଞାରେ ।

କବୁ ସେ ଟହଟହ ହସୁଥିଲା
ଫୁଟିଲା ଫୁଲଟି ପରି ।

ଆଜି ଦଧୀଶ୍ମି କଣିପୁ
ଝୁଲୁଥିଲା
ନୃସିଂହ ଜାନୁରେ ।

□□□

## ସଂପାତୀ

ଆମେ ଘୃଣିତ ପକ୍ଷୀ
ଲଶ ଖାଉଁ
କିନ୍ତୁ ଶ୍ରେଷ୍ଠ ଶିଶୁଙ୍କୁ ବଞ୍ଚାଉଁ
ଡେଣାର ଛାଇରେ ।
ବଶ୍ୱ ସୁନ୍ଦରୀ ମାତାମାନେ
ଯେତେବେଳେ ଜନ୍ମିତ ଶିଶୁଙ୍କୁ
ଫିଙ୍ଗିଦେଇ ଉଡ଼ିଯାଆନ୍ତି
ତାଙ୍କର ସ୍ୱର୍ଗକୁ ।
ଆମେ ଘୃଣିତ ପକ୍ଷୀ
କିନ୍ତୁ ରକ୍ଷୀ
ପର ଝିଅ ବୋହୂଙ୍କର ।
ଜଟାୟୁ ରୂପରେ ।
ହେ ବାନରଗଣ !
ଭୟ କର ନାହିଁ
ଆସ ମୋ ନିକଟକୁ ଆସ,
ଏବଂ ଜିଜ୍ଞାସା କର—
ଦେବି ମୁଁ ସୀତାଙ୍କ ଖବର
ଯାହା ଦେଖେ
ମୋ ଗୃଧ୍ର ଦୃଷ୍ଟିରେ ।
ଅଙ୍କୁରିତ ହେଉ ମୋର ପର
ଉଡ଼ିଯିବି ଅନନ୍ତ ଗଗନେ
ଲଢ଼ୁଥିବି ନିତ୍ୟ
ଅଗ୍ନି-ଗୋଲକ ସଙ୍ଗରେ
ଯାହା ଆକାଶ ଉରୁରେ ।

## ଜମ୍ବୁକ

ତୁମେ ମଣିମାଣିକ୍ୟ ଖଚିତ
ବକ୍ଷୋଜକା ପରିଧାନ କର
ଅଥବା···ସାଧାରଣ ସାଦା ବ୍ଲାଉଜ
ସେଥିରେ
ମୋର କିଛି ଯାଏ ଆସେ ନାହିଁ ।
କିନ୍ତୁ···
ତୁମେ ଯଦି ସ୍ନାନକର ନଦୀତୀରେ
ଜମ୍ବୁ ବୃକ୍ଷ ମୂଳେ
ମୁକୁଳିତ କରି ବକ୍ଷ କମଳରେ,
ମନ ମୋର ବିଚଳିତ
ହେବା ସ୍ୱାଭାବିକ ।
ହୁଏତ ମୁଁ ଧରିନେଲି
ତାହା ଏକ ଯୋଡ଼ା ଫଳ
ଏବଂ ଖାଦ୍ୟ ଲାଳସାରେ
(ଅଥବା ଦୁଧର ଆଶାରେ)
କରିଲି ଆଘାତ ।
ଆହା, କି କଷ୍ଟ
ଏ ମର୍ତ୍ତ୍ୟ ପୁରରେ···
ପରିତ୍ୟକ୍ତ ଅମୂଲ ଡବା
ଓମ୍‌ଫେଲ୍ଡ୍ ପେକେଟ୍ ଚଟାରେ ।
(ଶିଗାଳ ଓ କୁକୁର ମେଳରେ)
ଜମ୍ବୁ···
ଲୀଳଣ ଜନମ
ହୋଇଲା ଆକୃଷ୍ଟ

ଏ କାକ କୁମର
ମାତ  ! କ୍ଷମା କର···କ୍ଷମାକର ।
ଯଦ୍ୱ ମୁହିଁ ଇନ୍ଦ୍ରସୁତ···
କରିଲି ଆଘାତ ତବ
ବାମ ପୟୁରରେ,
ଧରିନଥ···ଭକ୍ତିଭରେ
କମ୍ର ଦମିତ ବାସନା
ମନୋ ବିକାରରେ ।
ଯେହେତୁ ···
ନାହିଁ ପକ୍ଷପାତ···
ନାହିଁ ଅପାଙ୍ଗ ଚାଳନ
ଆମ ସ୍ୱର୍ଗ ଇଲାକାରେ ।

×          ×          ×

ଦୋଷ କଲି···
ଭଲ ହେଲା···ଖୁବ୍ ଭଲ ହେଲା
ଗଲିଗଲା ଏକ ଚକ୍ଷୁ ମୋର ।
ଦେଖିବି ସଂସାରେ ଏଣିକି
ଗୋଟିଏ ଚକ୍ଷୁରେ ।
କିନ୍ତୁ କାହିଁ···
ସେ ରାମବାଣରୁ ମୁକ୍ତ କାହିଁ ?
ପଛୁ ତାହା ଆସୁଛି ଗୋଡ଼ାଇ,
ଏ ତ୍ରିଭୁବନେ
ସ୍ଥାନ ମୋର ନାହିଁ ।
ସଦା ମୁଁ ଶଙ୍କିତ, ଖ୍ୟାତ-ଜନ୍ତ
ମୁଖର ଉପୁରେ
ଅପରାଧବୋଧୀ
ଅବିଶ୍ୱାସ ଭରା
ମୋ କାକ ବୁଦ୍ଧିରେ ।

□□□

## ଅନୀପ୍‌ସିତା

ବେଳ ଗଡ଼ି ଗଲାଣି ।
ପ୍ରିୟ ହରିଣ ଶାବକ
ଓ ଶୁଆ-ଶାରୀମାନେ
ଦିଅ...ମତେ ବିଦାୟ ଦିଅ ।
ଭଉଣୀ ଏ,
ଫେରିଯାଅ ଝରଣା କୂଳରୁ ।
ମୋ ଭାଗ୍ୟରେ ମୋତେ
        ଜଳିବାକୁ ଦିଅ ।
        ବାଟ ବହୁ ଦୂର...
ପାଦେ ମୋର ଭାର
ବେଳ ଥାଉଁ ଥାଉଁ
        ବିଦାୟ ଦିଅ ।

× × ×

ସେ ଆସିବ ମୁଁ ଜାଣେ
ସିଂହର ଦାନ୍ତ ଗଣି
ତା ସଙ୍ଗରେ ଖେଳିବ ।
କିନ୍ତୁ ଜାଣି ନଥିଲି
        ଶକୁନ୍ତ ମୋର ଧାତ୍ରୀ,
ଭ୍ରୂଣରୁ ଯଦି ମୋର
        ଘଟିଥାନ୍ତା ହତ୍ୟା
କପର ହୁଅନ୍ତ
        ମୁଁ ବିଶ୍ୱ ସୁନ୍ଦରୀ !
କପର ହୁଅନ୍ତ
ଭଗତର ନୁହେଁ...ଭାରତର ମାତା !
ଧନ୍ୟ ମାତା...
ଧନ୍ୟ ମୋ ପିତା...
ମୁଁ ଯେ ଅନୀପ୍‌ସିତା
        ଗୋଟିଏ ଦୁହିତା ।

□□□

## * ଧୁନ୍ଧୁଳି

କିଏ ଏଠେଇ
ମୂର୍ଖ ବୋଲନ୍ତୁ ସେ
ଦଶମାସ ଗର୍ଭଧର ମା'ଆ ହେବ ।
ପାଞ୍ଚି ଅଙ୍କୁର, ବାଘମ୍ବାର ବାନ୍ତ
ସେପଟ ସ୍ୱର ।
ମତେ ଖୁବ୍ ଲାଜ ମାଡ଼େ ।
ଭଉଣୀ, ନେ ଏଇ ମନ୍ତ୍ର-ଫଳଟିକୁ
ଫିଙ୍ଗି ଦେଇ ଆସ
          ଗାଈ ହାଣ୍ଡିରେ ।
ଆମେ ଦୁହେଁ ନାଟକ ଖେଳିବା
ତୋ ଭିଣୋଇ ଆଗରେ ।
ଟଙ୍କା ଯେତେ ଚାହୁଁ ନେଇ ଯାଆ
ଦେଇ ଯାଆ ତୋ
ଛୁଆଟିକୁ ମତେ ।
ମୁଁ ଖାଲି...କଷ୍ଟ ପାଇବାର
          ଛଳନା କରିବ ।
ମୋର ନାହିଁ ସନ୍ତାନ କାମନା
ଲୋଡ଼ା ନାହିଁ ଗର୍ଭର ଯନ୍ତ୍ରଣା
ସତରେ...ବନ୍ଧ୍ୟା ଆଉ ବେଶ୍ୟା
          କେଡ଼େ ସୁଖୀ !
ଆତ୍ମଦେବ ପତ୍ନୀ
ଗୋକର୍ଣ୍ଣ ବିମାତା
          ନାମ ମୋ ଧୁନ୍ଧୁଳୀ
ମୁଁ ପ୍ରାଚୀନ ଭାଗବତ ନାରୀ ।

---

* ଭାଗବତ ମହାପୁରାଣ (ଗୀତାପ୍ରେସ ଗୋରଖପୁର)ର ମହାତ୍ମ୍ୟ ଅଂଶ ଅବଲମ୍ବନରେ ଲିଖିତ ।

## ଚରମ ବିଜୟ

ମୋର ଅପରାଧ
କ୍ଷମାକର ପ୍ରଭୁ,
ଏମିତି ଟିକଏ ଗେଲରେ
ଖରାବେଳେ ଖେଳୁଥିଲି,
ପାଦଟା ଖସି ପଡ଼ିଲା
ଭଲ ବାଲି ଯୋଗୁଁ ।
ମଣିମାଙ୍କ ପବିତ୍ର ସ୍ପର୍ଶ କି ବା
ଶ୍ରୀ ଅଙ୍ଗକୁ ବାଧାହେଲା
ଏ ବିଚରାର ଦୋଷ ନାହିଁ ପ୍ରଭୁ ।
ଜଙ୍ଗଲର ରାଜା
ଭୀଷଣ ଗର୍ଜନ କଲା
ପଞ୍ଝା ଉଠାଇଲା
ଶେଷ କରିଦେବ
ଏ ସାମାନ୍ୟ ଜୀବକୁ ।
(ହଠାତ୍ ତାହା ଶିଥିଳ ପଡ଼ିଗଲା
ଗୋଟିଏ ଗୀତ ଶୁଣି)—
"କରନାହିଁ ରୋଷ...ଆହେ ପଶୁଭୂଷଣ
ମଣନାହିଁ ମତେ ଛାର...
ପଡ଼ିଲେ ବିପଦ ହେବ ମୁଁ ସପଦ
କରିବ ମୁଁ ଉପକାର" ହେ...
ଯେଉଁ ଦିନ ଜଙ୍ଗଲି ପଶୁଙ୍କ ଲହରି
ଉଜାଣି ମାରୁଥିଲା—
ହାତୀ, ବରାହ, ଶମ୍ବର, ହରିଣ, ଶଶକ
ଖସି ଯାଉଥିଲେ,
ଗାତରୁ ବାହାରିଲା କ୍ଷୁଦ୍ର ଆରଣ୍ୟକ
ଦୃଢ଼ ଛନ୍ଦରେ
ଏବଂ ଯେତେବେଳେ
ସେ ଫେରିଲା ଦନ୍ତାଘାତ କରି,
ବସିଥିଲା ସିଂହର ପିଠିରେ
ସିଂହ ବାହିନୀ ଦୁର୍ଗାପରି
ବୀର ଦର୍ପରେ ◻◻◻

# ବଣ୍ଟନ୍

ଖର ଖର
ଡିଆଁ ମାରୁ ମାରୁ
ସେ ଯେତେବେଳେ
ପାଇଲା
ଗୋଟିଏ ଅଙ୍କୁର
ସବୁ ଅଙ୍କୁର
ଖଟା ପାଲଟିଲା ।

ଏବଂ
ବହୁ ପରିଶ୍ରମ ପରେ
ପାଇଲା ଯେବେ
ଗୋଟାଏ ଅଙ୍କୁର
ଅମ୍ଳା,
ଗମ୍ଳା,
ବି ମିଠା
ଲାଗିଲା ।

□□□

## ଆତଙ୍କାଯକ

ଜଙ୍ଗଲ କରେ କରେ
ଢଳେ ଯାଉ ଯାଉ
ଦେଖିଲି···ଭଙ୍ଗା କୂଅଟିଏ ।
ଭିତରୁ ଗର୍ଜନ ଶୁଭୁଛି
ବାଘ ମାମୁ
        ଅସୁବିଧାରେ ପଡ଼ିଛି ।
ଥୁଣ୍ଟା ଗଛ ଉପରେ
        କାଉଟିଏ ରାବୁଛି ।
ଏବଂ ଗୋଟିଏ ଶିଆଳ
ପଇଁତରା ମାରୁଛି,
ଏ ପଟରୁ ସେପଟକୁ ।
ଆଜ ମୋର ମଧ୍ୟସ୍ଥତା ଦରକାର ନାହିଁ
କୌଣସି ଶୃଗାଳର ।
ମୁଁ ଜଣେ
ଉପରକୁ ଆସିଲା ପରେ
ସେ ମୋର ମାଂସ ମାଗିବ ।
ତେବେ ମୁଁ ତାଙ୍କୁ ବଞ୍ଚେଇବି
କଳେ, ବଳେ, କୌଶଳେ ନିଶ୍ଚୟ ।
କାରଣ ମୁଁ
        ବାଘ ଲୁହେଁ
                ଗୋଟିଏ ମଣିଷ ।

□□□

## ଉଦାସ୍ତି

ମୁଁ ତାକୁ ଇଜାଜତ୍ ଦେଇଛି —
ତୁମେ ଯେତେବେଳେ ଚାହଁ
ଆସିପାର ମୋ ପାଖକୁ
ତୁମର ସତ୍କାର ମୋର ଧର୍ମ;
କାରଣ
ତୁମେ ବନ୍ଧୁ ···ଦୋସ୍ତ ମୋର ।
ତୁମେ ଯେବେ ଚାହଁ
ଅଶ୍ରୁଝରା ଦୁଇଟି ଆଖିରେ
ମୋ ହୃଦୟ ଉଚ୍ଛୁଳି ପଡ଼େ
ତରଳ ଜାମୁର ରସରେ ।
ଯେଉଁ ଦିନ···ବାନ୍ଧବୀ କଥାରେ
ମଜ୍ଜି ଜଣଆରେ
ମାଗିଲ ମୋ ଦିଲ୍
ସେଦିନ ମୋ କଲିଜାଟା ଯାଇ
ଛପିଗଲା ଗଛ କୋରଡ଼ରେ ।
ସେଦିନୁ ମୁଁ ମର୍କଟ ସନ୍ତାନ
ହରାଇ ହୃଦୟ
ପାଲଟିଛି ମିଥ୍ୟା ବାଦୀ···ନିଛକ ବନ୍ଦର ।
ହେ ବନ୍ଧୁ ! ଦୋସ୍ତ ମୋର
ପାରିକର ମୋତେ···
ଲଗାଅ କୂଲରେ
ଲାଗିଯାଉ କଲିଜାଟି
ଫମ୍ପା ମୋର ହୃଦୟ ଭିତରେ ।



# ଦ୍ୱନ୍ଦ୍ୱ

ଭାଇ, କହୁ ଦଉଛୁ
ମଣିଷ ମାଉଁସ ମତେ
ଜମା ଭଲ ଲାଗେନା ।
ଚଉଡ଼ା ଛାତି···ବଳିଲା ବଳିଲା ମାଂସ ପେଶୀ
ସେ ଲୋକଟା କିଏ ?
ଗଛ ମୂଳେ ଜଗି ରହିଛି
ମାଆ ଓ ଭାଇଙ୍କୁ ।
ତାକୁ ଦେଖି ଲାଗୁଁ
ମୋ ଆଖି ଖୋସି ହୋଇଯାଉଛି
        ଛାତି କୋର ହୋଇଯାଉଛି ।
ମତେ ଭଲ ଲାଗେ କୁନି ଛୁଆ
        ଆଉ ତାର ଛୋଟ ପାଦ ଚିହ୍ନ ।
କେତେ ଦିନ ଏ କଠୋର ହାତରେ
        ତମପାଇଁ ମୋଡ଼ୁଥିବ
            ହରିଣ ଶାବକ ?
ଭାଇ, ଭୁହିଁ ସେ ଲୋକଟାକୁ
        ତାର ବଳିଷ୍ଠ ଦେହକୁ ।
ତା ସାଙ୍ଗରେ ଜମା ଲାଗିବନି
ପ୍ରଥମ ଥର ସେ ହାରିବ ଅବଶ୍ୟ
କିନ୍ତୁ ମଣିଷ ପୁଅ ସେ
ହସାଇ ତୁମକୁ
ନିଶ୍ଚୟ ଜିଣିବ ଶେଷକୁ ।

□□□